

# ବିଲେଇଙ୍କ ଶୋଭାଯାତ୍ରା

ବିଲେଇଙ୍କ ଶୋଭାଯାତ୍ରା

ମୂଳ ଲେଖା : ୱେଣ୍ଡା ଗେ'ଗ୍
ଓଡିଆ ରୂପାନ୍ତର ବିନୟକୃଷ୍ଣ ପଟ୍ଟନାୟକ
ପ୍ରକାଶକ : **ମାନବିକ,**
ତୋଟାସାହି, ମାଷ୍ଟରପଡା,
ଫୁଲବାଣୀ-୭୬୨୦୦୧
ଦୂରଭାଷ : ୫୩୨୬୬
ଅଙ୍ଗସଜ୍ଜା : ଇଣ୍ଡେକ୍ସ୍, ଭୁବନେଶ୍ୱର
ମୁଦ୍ରଣ ପଦ୍ମା କମର୍ସିଆଲ୍, ଭୁବନେଶ୍ୱର
ସହଯୋଗ ରାଶି **ପାଞ୍ଚ ଟଙ୍କା ମାତ୍ର**
ପ୍ରକାଶ କାଳ : ଉତ୍କଳ ଦିବସ, ୧୯୯୮

**Millions of Cats**

Author : Wanda Ga'g
Preparation: Binaya Krushna Pattanayak
Publisher : **Manavik**
Tota Sahi, Master Pada,
Phulbani - 762001
Ph : (06842) 53266
Layout : Index, Bhubaneswar
Printer : Padma Commercial
Price : **Rs. 5.00**
Publication Period : 1st April, 1998.

ମାନବିକ ... ଏକ ଶିକ୍ଷା ଓ ବିଜ୍ଞାନପ୍ରେମୀ ପରିବାର । ଏ ଦିଗରେ ଆଗ୍ରହୀ ପ୍ରତ୍ୟେକ ବନ୍ଧୁ ଏହି ପରିବାରର ଜଣେ ସଭ୍ୟା/ସଭ୍ୟ ଅଟନ୍ତି । ଶିକ୍ଷାର୍ଥୀ, ଶିକ୍ଷକ ଓ ଅଭିଭାବକଙ୍କ ମଧ୍ୟରେ ଏକ ସହଯୋଗୀ ସମ୍ପର୍କ ବଢ଼ାଇ ଶିକ୍ଷାର ଅସଲ ମର୍ମକୁ ଖୋଲାଇବା ପାଇଁ ଏହାର ବିଭିନ୍ନ ଉଦ୍ୟମ ଚାଲୁରହିଛି । ବିଜ୍ଞାନ, ଶିକ୍ଷା କର୍ମଶାଳା, ଶିବିର,ରଚନାତ୍ମକ ପୁସ୍ତକ ଓ ପତ୍ରିକା ପ୍ରକାଶନ ଆଦି ମାଧ୍ୟମରେ ସମାଜରେ ଏକ ସୃଜନଶୀଳ ଓ ବିଜ୍ଞାନ ପ୍ରେମୀ ଦୃଷ୍ଟିକୋଣକୁ ବଢ଼ାଇବା ପାଇଁ ଏହା ଏକ ଦଳଗତ ପ୍ରୟାସ ।
ପିଲାଙ୍କ ଚିନ୍ତା ଓ ଭାବର ପରିପ୍ରକାଶକୁ ବୁଝାଇବା ଏବଂ ତାଙ୍କୁ ଉପଯୁକ୍ତ ସମ୍ମାନ ଓ ଆଦର ଦେବା ଦିଗରେ ଏହି ପୁସ୍ତିକାଟି ଏକ ମଡେଲ ।

# ବିଲେଇଙ୍କ ଶୋଭାଯାତ୍ରା



ଲେଖିକା : ୱେଣ୍ଡା ଗେ'ଗ୍
ପ୍ରସ୍ତୁତି: ମାନବିକ

# ବିଲେଇଙ୍କ ଶୋଭାଯାତ୍ରା

—— [illegible] ? ——

ପ୍ରିୟ ସାଥି,

ଏହି ପୁସ୍ତିକାଟିକୁ ଛାପିବା ପଛରେ ଆମର ଏକ ଦାବି ରହିଛି । ପିଲାଙ୍କ ପାଇଁ ଏବଂ ପିଲାଙ୍କ ନାମରେ ଆମ ରାଜ୍ୟରେ ପ୍ରତି ଅନେକ ବହି ଲେଖାଯାଉଛି । କିନ୍ତୁ ଅନେକ କ୍ଷେତ୍ରରେ ଏହା ପିଲାଙ୍କ ମନକୁ ବୁଝିବା, ବୁଝାଇବା ବା ଛୁଇଁବା ଦିଗରେ ବିଶେଷ ଉପଯୋ ହୋଇ ପାରୁ ନାହିଁ । କେବଳ ବଡମାନଙ୍କର ଚିନ୍ତାଧାରା ଓ ପରିପ୍ରକାଶ ଏଥିରେ ବିଶେଷ ବଳବତର ମନେ ହେଉଛି । ଫଳରେ ପିଲାଏ କମ୍ ବହିକୁ ଆଦର କରୁଛନ୍ତି ଓ ବାରମ୍ବାର ବା ଅଧିକ ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି ।

କିନ୍ତୁ ଏହି ଛୋଟ ପୁସ୍ତିକାଟି ପିଲାଙ୍କ ମଧ୍ୟରେ ଯଥେଷ୍ଟ ଉନ୍ମାଦନା ଆଣିଥିବାର ଆମେ ଲକ୍ଷ୍ୟ କରିଛୁ । ଏହାର ପ୍ରତ୍ୟେକ ପାଇଁ ପିଲାଏ ମନ ଭରି ଉପଭୋଗ କରିଛନ୍ତି ଓ ଥରକୁ ଥର ପଢିବା ପାଇଁ ହାତ ବଢାଉଛନ୍ତି । କେବଳ ଗପଟିକୁ ଶୁଣି ମଧ୍ୟ ପିଲାଏ ଉତ୍ ଉଠିଛନ୍ତି । ଚିତ୍ରଗୁଡିକୁ ଦେଖିଲା ପରେ ସେମାନେ ନିଜ ଆଖି ଓ ହାତ ପାଇଁ ବି ଯଥେଷ୍ଟ ଖୋରାକ ପାଉଛନ୍ତି । ଅନ୍ୟ ସମୟରେ ଏହାର ଗୀ ଦୋହରାଇ ଓ ଏହା ପରି ଛବି ଆଙ୍କି ଖୁସି ହେବା ଏହାର ଏକ ସ୍ପଷ୍ଟ ପ୍ରମାଣ ।

ଅନେକ ପିଲାଙ୍କ ମନପସନ୍ଦ ଗପ ତାଲିକାରେ ଏହି ଗପଟିର ସ୍ଥାନ ବେଶ୍ ଆଗରେ । ଆଶା କରୁଛୁ ଆପଣ ବି ଏହି ପୁସ୍ତିକା ସେତିକି ଆନନ୍ଦ ପାଇବେ । ପିଲାଙ୍କ ପାଇଁ ଲେଖିବାକୁ କଲମ ଧରିଥିବା ବଂଧୁମାନଙ୍କ କଳ୍ପନା ଓ ପରିପ୍ରକାଶକୁ ବାଟ ଦେଖାଇବା ଦିଗ ଏହା ବେଶ୍ ସହାୟକ ହୋଇପାରିବ ।

**ମାନବିକ ପରିବାର ।**

# ବିଲେଇଙ୍କ ଶୋଭାଯାତ୍ରା



ଅନେକ ଦିନ ତଳର କଥା । ଗୋଟିଏ ଗାଁରେ ଦୁଇଜଣ ନିପଟ ବୁଢ଼ା ଓ ବୁଢ଼ୀ ରହୁଥିଲେ । ସେମାନଙ୍କର ଛୋଟିଆ କୁଡ଼ିଆଟିଏ ଥିଲା । ଏହାକୁ ସେମାନେ ବେଶ୍ ସଫାସୁତୁରା ରଖିଥିଲେ ।

ନିଜ ଘର ଚାରିପାଖରେ ଦୁହେଁ ଗୋଟିଏ ସୁନ୍ଦର ବଗିଚା ବନାଇଥିଲେ । କେବଳ କବାଟ ଆଗରେ ବାଟଟିକୁ ହିଁ ସେମାନେ ଖାଲି ଛାଡ଼ି ଦେଇଥିଲେ । ତାଙ୍କ ବଗିଚାଟିରେ ଅନେକ ସୁନ୍ଦର ସୁନ୍ଦର ଫୁଲ ଫୁଟିଥିଲା । କିନ୍ତୁ ତଥାପି ବୁଢ଼ାବୁଢ଼ୀ ଖୁସି ନ ଥିଲେ । ସେମାନଙ୍କୁ ଖୁବ୍ ନିଛାଟିଆ ଓ ଏକଲା ଲାଗୁଥିଲା ।



ଦିନେ ଦୀର୍ଘ ଶ୍ୱାସ ଛାଡ଼ି ବୁଢ଼ୀ କହିଲା, " ଆମ ପାଖରେ ଯଦି ବିଲେଇଟିଏ ଥାଆନ୍ତା....."

"ବିଲେଇ ?" ବୁଢ଼ା ପଚାରିଲା ।

"ହଁ, ଗୋଟିଏ ଛୋଟିଆ ଗେଲି ବିଲେଇ.... ଯିଏ ଯଦି ମିଆଁଉଁ ମିଆଁଉଁ କରୁଥାଆନ୍ତା" ବୁଢ଼ୀ କହିଲା ।

"ମୁଁ ତୋ ପାଇଁ ନିଶ୍ଚୟ ଗୋଟିଏ ବିଲେଇ ଆଣିଦେବି ।" ବୁଢ଼ା କହିଲା ।





ଏଥର ସେ ବିଲେଇ ଖୋଜିବାକୁ ବାହାରି ପଡ଼ିଲା । ଖରା ଖାଉଥିବା କେତେ ପାହାଡ଼ ମୁଣ୍ଡିଆକୁ ସେ ଟପିଗଲା । କେତେକ ଘାଟୀରେ ବେଶ୍ ଥଣ୍ଡା ଲାଗୁଥିଲା । ବୁଢା ଏସବୁକୁ ଟପି ଆଗେଇ ଚାଲିଲା । ସେ ଲଗାତାର ଚାଲିଥାଏ । ଚାଲିଚାଲି ଅନେକ ବାଟ ଗଲାପରେ ସେ ଏପରି ଏକ ପାହାଡ଼ରେ ପହଞ୍ଚିଲା...ଯେଉଁଠି ଅସଂଖ୍ୟ ବିଲେଇ ଛତୁ ଫୁଟିଲା ପରି ଚାରିଆଡ଼େ ଭରି ହୋଇ ରହିଥିଲେ ।

ଏଇଠି ବିଲେଇ, ସେଇଠି ବିଲେଇ,
ଯୁଆଡ଼େ ବି ଦେଖ, ବିଲେଇ ବିଲେଇ ।
ଚିଆଁଉଁ, ମିଆଁଉଁ, ଚିଲେଇ ବିଲେଇ,
ଲକ୍ଷ ଲକ୍ଷ କୋଟି ବିଲେଇ ବିଲେଇ !



"ଆହା...." ବୁଢା ଖୁସିରେ ଚିଲେଇ ଉଠିଲା "ଏବେ ମୁଁ ସବୁଠୁ ସୁନ୍ଦର ବିଲେଇଟିକୁ ଘରକୁ ନେଇଯିବି ।" ସେ ଖୋଜି ଖୋଜି ଗୋଟିଏ ବିଲେଇ ବାଛିଲା । ତା' ରଙ୍ଗ ପୂରା ଦୁଧ ପରି ସଫା ଧୋବ ଥିଲା ।

ତାକୁ କାନ୍ଧରେ ବସେଇ ସେ ଚାଲିବାକୁ ବାହାରିଛି, ଏତିକିବେଳେ ଗୋଟିଏ କଳା-ଧଳା ବିଲେଇ ତା' ଆଖିରେ ପଡ଼ିଲା । ସେ ବି ଆଗର ବିଲେଇଟି ପରି ଖୁବ୍ ସୁନ୍ଦର ଦେଖାଯାଉଥିଲା । ସେ ସେହି ବିଲେଇଟିକୁ ବି ଉଠାଇଲା । ଦୁହିଁଙ୍କୁ ଧରି ଘରମୁହାଁ ଚାଲିଲା ।





ପୁଣି ଗୋଟିଏ ଗୁଲୁଗାଲିଆ, ଲୋମଶ ବିଲେଇ ସେ ଦେଖିବାକୁ ପାଇଲା । ସେ ବି ରୂପ-ରଙ୍ଗରେ ଆଗର ବିଲେଇ ଦୁଇଟିଠାରୁ କିଛି କମ୍ ନ ଥିଲା । ତେଣୁ ସେ ତାକୁ ବି କାଖରେ ଜାକି ଚାଲିଲା ।

ଆଗରେ ଗଛ ଡ଼ାଳରେ ତାକୁ ପୁଣି ଆଉ ଗୋଟିଏ ବିଲେଇ ଦେଖାଗଲା । ଏତେ ସୁନ୍ଦର ବିଲେଇଟିକୁ ବା ସେ କେମିତି ଛାଡ଼ି ଦିଅନ୍ତା ! ତାକୁ ଏହା ଜମା ଠିକ୍ ଲାଗିଲାନି । ସେ ତାକୁ ବି ଉଠାଇ ଚାଲିଲା ।







ବାସ୍ ଏହି ସମୟରେ ବୁଢା ଗୋଟିଏ କୁନି ବିଲେଇକୁ ଦେଖିଲା । କାଳି ବିଲେଇ ଛୁଆଟି ଖୁବ୍ ଗୁଲୁଗାଲିଆ ଦେଖାଯାଉଥାଏ ।

''ଏହାକୁ ଛାଡ଼ିଯିବା ତ ବଡ଼ ଲାଜର କଥା'' ବୁଢା ଧୀରେ ଧୀରେ କହିଲା । ସେ ତାକୁ ବି ଧରି ଚାଲିଲା ।

ତାକୁ ପୁଣି ଆଉ ଗୋଟିଏ ବିଲେଇ ଦିଶିଲା । ସେ ବିଲେଇ ନୁହେଁ; ଗୋଟିଏ କୁନି ଚିତା ବାଘ ପରି ଦେଖାଯାଉଥିଲା । ଏହାର ପିଠିରେ ହଳଦିଆ ଓ ମାଟିଆ ରଙ୍ଗର କଲରା ପତର ଦାଗ ସବୁ ତାକୁ ବେଶ୍ ସାଜୁଥିଲା ।

''ଏହାକୁ ତ ନେବି ହିଁ ନେବି'' ବୁଢା ଚିଲେଇ ଉଠିଲା ଓ ବିଲେଇଟିକୁ କାଖରେ ଜାକିଲା ।



ଏମିତି ହେଲା, ବୁଢା ଯେତେବେଳେ ବି ମୁଣ୍ଡ ଉଠାଇଲା, ଆଉ ଗୋଟିଏ ସୁନ୍ଦର ବିଲେଇ ଉପରେ ତା' ଆଖି ପଡ଼ିଲା । ସେ ସେହି ବିଲେଇଟିକୁ ବି ଉଠାଇ ନେଉଥାଏ । ଏହାର ଫଳ ଏପରି ହେଲା ଯେ, ଶେଷରେ ସେ ସବୁତକ ବିଲେଇଙ୍କୁ ଧରି ଚାଲିଲା ।



ସେ ଏବେ ଘରମୁହାଁ ଫେରିଲା । ଖରା ଖାଉଥିବା ପାହାଡ଼ ମୁଣ୍ଡିଆ, ଥଣ୍ଡା ଘାଟୀ ଆଦିକୁ ଟପି ସେ ଘରକୁ ଚାଲିଲା । ଏଥର ସେ ବୁଢୀକୁ ଏଇ ସୁନ୍ଦର ବିଲେଇଗୁଡ଼ିକୁ ଦେଖାଇବ ।

ତା' ପଛରେ ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ବିଲେଇ ଚାଲିଥାନ୍ତି । ଦେଖିବାକୁ ଏହା ଏକ ବିଚିତ୍ର ଦୃଶ୍ୟ ଥିଲା ।



ବାଟରେ ଗୋଟିଏ ପୋଖରୀ ପଡ଼ିଲା ।

''ମିଆଁଉଁ ମିଆଁଉଁ ! ଆମକୁ ଶୋଷ କଲାଣି ।'' ସେହି ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ବିଲେଇ ଚିଲ୍ଲେଇବାରେ ଲାଗିଲେ ।

"କିଛି ଚିନ୍ତା କର ନାହିଁ । ଏଇଠି ତ ପ୍ରଚୁର ପାଣି ଅଛି ।"

ବୁଢା କହିଲା ।

ପ୍ରତ୍ୟେକ ବିଲେଇ ଢୋକେ ଲେଖାଏଁ ପାଣି ପିଉ ନ ପିଉଣୁ ପୂରା ପୋଖରୀଟା ଖାଲି ହୋଇଗଲା ।





‘‘ମିଆଁଉଁ, ମିଆଁଉଁ ! ଆମକୁ ଏବେ ଭୋକ କରୁଛି’’ ଏକା ସାଥିରେ ସେହି ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ବିଲେଇ ରଡ଼ିବାରେ ଲାଗିଲେ ।

''ଏହି ପାହାଡ଼ ଉପରେ ଘାସ ଭରି ରହିଛି'' ବୁଢ଼ା କହିଲା ।

ପ୍ରତ୍ୟେକ ବିଲେଇ ଗୋଟିଏ ଲେଖାଏଁ ପତ୍ର ଚାଖୁ ଚାଖୁ ପୂରା ପାହାଡ଼ଟା ଲଣ୍ଡା ହୋଇଗଲା ।





ଅଳ୍ପ ସମୟ ଭିତରେ ବୁଢା ଘର ପାଖରେ ପହଞ୍ଚିଗଲା । ତାଙ୍କୁ ଫେରୁଥିବା ଦେଖି ବୁଢୀ କହିଲା, "ଆରେ.... ଆରେ !" ସେ ଚିଲ୍ଲେଇଲା, "ତୁମେ ଇଏ କଣ କଲ ? ମୁଁ ତ ତୁମକୁ ଗୋଟିଏ ଛୋଟ ବିଲେଇ ହିଁ ମାଗିଥିଲି । କିନ୍ତୁ ମୁଁ ତ ଦେଖୁଛି ତୁମେ ବିଲେଇଙ୍କ ଶୋଭାଯାତ୍ରା କରି ଆଣିଛ !"



ଏଇଠି ବିଲେଇ, ସେଇଠି ବିଲେଇ,
ଯୁଆଡ଼େ ବି ଦେଖ, ବିଲେଇ ବିଲେଇ ।
ଚିଆଁଉଁ, ମିଆଁଉଁ, ଚିଲେଇ ବିଲେଇ,
ଲକ୍ଷ ଲକ୍ଷ କୋଟି ବିଲେଇ ବିଲେଇ !

‘‘ଏତେ ବିଲେଇଙ୍କୁ ଆମେ କେମିତି ଖୁଆଇବା ?’’ ବୁଢ଼ୀ କହିଲା, ‘‘ଏମାନେ ତ ପୂରା ଆମ ଘରଟାକୁ ହିଁ ଖାଇଯିବେ !’’

‘‘ମୁଁ ତ ଏ ବିଷୟରେ ଜମା ବି ଭାବି ନ ଥିଲି’’ ବୁଢ଼ା କହିଲା, ‘‘ଏବେ ଆମେ କରିବା କ’ଣ ?’’

ବୁଢ଼ୀ କିଛି ସମୟ ଭାବିଲା । ସେ କହିଲା, ‘‘ଠିକ୍ ଅଛି । ଏହାର ବାଟଟି ମତେ ଜଣା । ଆମେ ବିଲେଇଙ୍କୁ ହିଁ ବାଛିବାକୁ କହିବା, ସେମାନଙ୍କ ଭିତରୁ କିଏ ଆମ ପାଖରେ ରହିବ ।’’

‘‘ଠିକ୍ କହିଛୁ’’ ସେ ବୁଢ଼ୀକୁ କହିଲା, ଏଥର ସେ ସବୁ ବିଲେଇଙ୍କୁ ଡ଼ାକି କହିଲା, ‘‘ତୁମ ଭିତରୁ କିଏ ସବୁଠୁ ବେଶୀ ସୁନ୍ଦର ?’’

‘‘ମୁଁ !’’

‘‘ମୁଁ !’’

‘‘ନାଇଁ ନାଇଁ, ମୁଁ ସବୁଠୁ ସୁନ୍ଦର ! ମୁଁ....ମୁଁ !’’

‘‘ନା, ମୁଁ ! ମୁଁ !’’ ହଜାର ହଜାର, ଲକ୍ଷ ଲକ୍ଷ କୋଟି କୋଟି ବିଲେଇ ଏକ ସ୍ୱରରେ ଏପରି ଚିଲେଇବାରେ ଲାଗିଲେ । କାରଣ ପ୍ରତିଟି ବିଲେଇ ନିଜକୁ ସବୁଠୁ ସୁନ୍ଦର ବୋଲି ଭାବୁଥିଲା ।



ଏଥର ସବୁ ବିଲେଇ ନିଜ ନିଜ ଭିତରେ ଝଗଡ଼ା କରିବାରେ ଲାଗିପଡିଲେ ।



ବିଲେଇ ସବୁ ପରସ୍ପରକୁ ରାମ୍ପୁଡ଼ି -କାମୁଡ଼ି ପକାଉଥାନ୍ତି । ସେମାନେ ଏତେ ଜୋରରେ ଶବ୍ଦ କଲେ ଯେ ବିଚରା ବୁଢା, ବୁଢୀ ଦଉଡ଼ିଯାଇ ଘରେ ପଶିଗଲେ । ସେମାନଙ୍କୁ ଏହି ଝଗଡ଼ାଝାଟି ଜମା ଭଲ ଲାଗିଲା ନାହିଁ । କିନ୍ତୁ କିଛି ସମୟ ପରେ ବାହାରର ଏହି କୋଳାହଳ ବନ୍ଦ ହୋଇଗଲା । ଏଥର ବୁଢାବୁଢୀ ଝରକା ଦେଇ ବାହାରକୁ ଆଖି ପକାଇଲେ । ସେମାନେ ସେଠାରେ ଆଉ ଗୋଟିଏ ବି ବିଲେଇ ଦେଖିବାକୁ ପାଇଲେ ନାହିଁ !



''ମତେ ଲାଗୁଛି ବିଲେଇ ସବୁ ପରସ୍ପରକୁ ଖାଇଗଲେ'' ବୁଢ଼ୀ କହିଲା, ''ଏହା ବହୁତ ଖରାପ କଥା ।''

''ଟିକେ ଏପଟେ ଦେଖ ତ'' ବୁଢ଼ା ଗୋଟିଏ ଘାସବୁଦା ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା । ସେଠାରେ ଗୋଟିଏ ଛୋଟିଆ ବିଲେଇଛୁଆ ଡରିଯାଇ ଛପି ବସିଥାଏ । ସେମାନେ ସେଠାକୁ ଯାଇ ତାକୁ କୋଳକୁ ଉଠାଇନେଲେ । ସେ ଅତ୍ୟନ୍ତ ଦୁର୍ବଳିଆ ଥିଲା ଓ ମର ମର ହେଉଥିଲା ।

‘‘ବିଚାରୀ ବିଲେଇ ଛୁଆ !’’ ବୁଢ଼ୀ କହିଲା ।

‘‘ଆହା, ମୋ ଗେଲି ବିଲେଇ ଛୁଆଲୋ’’, ବୁଢ଼ା କହିଲା, ‘‘ଏହା ଏପରି କିପରି ହେଲା ? ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ବିଲେଇ ତତେ କିପରି ଖାଇଗଲେ ନାହିଁ ?’’

‘‘ମୁଁ ତ ଏକ ଛୋଟିଆ ପୋଷା ବିଲେଇଟିଏ’’, ବିଲେଇଛୁଆ କହିଲା ‘‘ଆପଣ ଯେତେବେଳେ ପଚାରିଲେ, କେଉଁ ବିଲେଇ ସବୁଠୁ ବେଶୀ ସୁନ୍ଦର, ସେତେବେଳେ ମୁଁ ଚୁପ୍ ରହିଲି ଓ କିଛି କହିଲି ନାହିଁ । ତେଣୁ କେହି ବି ମୋ ଆଡ଼କୁ ଦୃଷ୍ଟି ଦେଲେ ନାହିଁ ।’’





ସେମାନେ ବିଲେଇ ଛୁଆଟିକୁ ଘର ଭିତରକୁ ନେଇଗଲେ । ସେଠାରେ ବୁଢୀ ତାକୁ ଗରମ ପାଣିରେ ଗାଧୋଇ ଦେଲା । ବ୍ରଶ ସାହାଯ୍ୟରେ ସେ ତାର ନରମ ଓ ଚକଚକିଆ ଲୋମକୁ କୁଣ୍ଡାଇ ଦେଲା ।



ସବୁଦିନ ସକାଳେ ସେ ବିଲେଇକୁ
ବହୁତ ଦୁଧ ପିଇବାକୁ ଦେଲା ।



ଖୁବ୍ ଶୀଘ୍ର ସେ ଏକ ମୋଟାସୋଟା
ଲୋମଶ ଓ ଚଞ୍ଚଳିଆ ବିଲେଇ ବନିଗଲା ।

‘‘ଯାହାହେଉ, ଶେଷରେ ଆମକୁ ଗୋଟିଏ ଗୁଲୁଗାଲିଆ ବିଲେଇ ମିଳିଗଲା’’ ବୁଢ଼ୀ କହିଲା ।

‘‘ଇଏ ଦୁନିଆର ସବୁଠୁ ସୁନ୍ଦର ବିଲେଇ ଅଟେ’’ ବୁଢ଼ା କହିଲା । ‘‘ମୁଁ ଏହି କଥାଟି କହିପାରୁଛି । କାରଣ, ମୁଁ ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ବିଲେଇଙ୍କୁ ଦେଖିଛି । କିନ୍ତୁ ଏମାନଙ୍କ ଭିତରୁ କେହି ବି ଏଇ ବିଲେଇଟି ପରି ସୁନ୍ଦର ନଥିଲେ ।’’

# ମାନବିକ *ପ୍ରୟୋଗଶାଳା*

ଶିକ୍ଷା ଓ ବିଜ୍ଞାନ ... ଆଜିର ମଣିଷ ହାତରେ ଦୁଇଟି ବଳିଷ୍ଠ ଓ ଯାଦୁକାରୀ କାଉଁରି କାଠି। ଏହାର ପରଶରେ ମଣିଷ ପୃଥିବୀକୁ 'ସ୍ୱର୍ଗ' କରି ଦେଇପାରିବ । କିନ୍ତୁ ଏହି ଚାବିକାଠିକୁ ହାତରେ ଧରି ବି ସେ ଆଜି ଚିନ୍ତାରେ ବୁଡି ରହିଥିଲା ପରି ମନେ ହେଉଛି । ଏହାର କାରଣ କ'ଣ ? ଏହାର ସଦୁପଯୋଗର ଉପଯୋଗିତା ସେ ବୃହତ ଅର୍ଥରେ ବୁଝି ପାରିନାହିଁ । ଏ ଦିଗରେ ଆମ ସମାଜରେ ଯେଉଁ ଭାବ ଓ ରଚିର ଅଭାବ ରହିଛି, ତା' ହେଉଛି - *ମାନବିକତା* । ଆମେ ସମସ୍ତେ ଅନୁଭବ କରିଛେ ଯେ, ଜଣେ ମଣିଷର ମାନବିକ ବିଚାରଧାରା ଓ ଆଚରଣ ବି ତା' ଚାରିପାଖରେ ସ୍ୱର୍ଗୀୟ ସୁରଭି ଭରି ଦେଇପାରେ । ଅତଏବ, ଜଣ ଜଣେ କରି ଅଧିକରୁ ଅଧିକ ସାଥି ଏହି ଭାବକୁ ଆପଣାଇଲେ, ସମାଜ ସଫଳ ହେବାକୁ ବାଧ ହେବ । ଏହି ବିଚାର ଓ ବିଶ୍ୱାସକୁ ପୁଞ୍ଜି କରି ମାନବିକ ପରିବାର ଗୋଟିଏ ତୁଳସୀ ଗଛ ପରି ଶିକ୍ଷା ଓ ବିଜ୍ଞାନର ଅସଲ ମହକକୁ ଖେଳାଇ ଚାଲିଛି ।

ଗଛଟି ଚେର ଧରିଛି ଓଡିଶାର କେନ୍ଦ୍ରସ୍ଥଳ-ଆଦିବାସୀଙ୍କ ଇଲାକା...ଫୁଲବାଣୀର ମାଳଭୂମିରେ । ଏହାର ସ୍ରଷ୍ଟା ହେଉଛନ୍ତି ଅଜଣା, ଅଶୁଣା ଓ ନୀରବ ଭାବରେ ଶିକ୍ଷାର ବିକାଶରେ ଲାଗିଥିବା ଜଣେ ବିପ୍ଲବୀ *ଲୋକଶିକ୍ଷକ* ଓ ଏକ ଆଗ୍ରହୀ ସାଥିଦଳ । ତାଙ୍କ ପାଇଁ ଶିକ୍ଷା, ଶ୍ରେଣୀର ଚାରିକାନ୍ଥ ଭିତରେ ବା ଶୃଙ୍ଖଳା ଡିଗ୍ରୀରେ ଆବଦ୍ଧ ନୁହେଁ । ଏହା ହେଉଛି ମଣିଷ ତିଆରିର ଏକ କାଇଦା... ଜୀବନକୁ ସରସ, ସୁନ୍ଦର ଓ ରଚନାତ୍ମକ କରିବାର ଏକ କଳା । ତା' ବି ପୁଣି ଶ୍ରେଣୀର କିଛି ପିଲାଙ୍କ ପାଇଁ ନହୋଇ ପୂରା ଇଲାକାଟିରେ ଅସଲ ଶିକ୍ଷା ଓ ବିଜ୍ଞାନର ଏକ ଉପଯୋଗୀ ପରିବେଶ ଗଢି ତୋଳିବା ଦିଗରେ ଉଦ୍ଦିଷ୍ଟ । ତାଙ୍କର କାମ ଭିତରେ ରହିଛି : ପ୍ରତ୍ୟେକ ଶିକ୍ଷାର୍ଥୀଙ୍କୁ ତାଙ୍କ ରଚି ଅନୁସାରେ ଫୁଟି ଉଠିବା ପାଇଁ ଆବଶ୍ୟକୀୟ ଉପାଦାନ ଯୋଗାଇଦେବା, ମାଗଣା ହୋମିଓପାଥି ଚିକିତ୍ସା ମାଧ୍ୟମରେ ଏକ ସାମାଜିକ ସହଯୋଗ ଓ ସମ୍ପର୍କ ବଢାଇବା, ସମାଜକୁ କଳୁଷିତ କରି ପକାଉଥିବା ରକ୍ଷଣଶୀଳତାର କଳଙ୍କ ବିରୁଦ୍ଧରେ ସ୍ୱର ଉଠାଇବା ଓ ଦଳବଳକୁ ବଢାଇବା, ଆଜିର ଶିକ୍ଷାର ମୂଳଶତ୍ରୁ ଟ୍ୟୁସନ୍ ଓ ଦୁର୍ନୀତିକୁ ବିରୋଧ କରିବା ଏବଂ ସର୍ବୋପରି ବିଜ୍ଞାନର ଅସଲଧାରାକୁ ପ୍ରସାର କରାଇବା ।

ଏହି ଧାରାରେ 'ମାନବିକ' ଏବେ ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଜ୍ଞାନ କ୍ଷେତ୍ରରେ ଏକ *ଖୋଲା ପ୍ରୟୋଗଶାଳା* । ଏଥିରେ ରଚି ରଖୁଥିବା ଯେ କୌଣସି ସାଥି ଏହାର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ଭାଗ ନେଇ ପାରିବେ ।



# ଶିଶୁ ସାହିତ୍ୟମାଳା

# ମାନବିକ

## ମୂଲ୍ୟ - ପାଞ୍ଚଟଙ୍କା

---

*'ମାନବିକ'ର କେତେକ ନିୟମିତ ଗତିବିଧି*

• ପ୍ରାଚୀନ ପତ୍ରିକା 'ସନ୍ଧାନ'ର ନିୟମିତ ପ୍ରକାଶନ • ଶିକ୍ଷା, ବିଜ୍ଞାନ, ସ୍ୱାସ୍ଥ୍ୟ ଓ ବିକାଶ ସମ୍ବନ୍ଧୀୟ ବିଭିନ୍ନ ପୁସ୍ତକ ପ୍ରକାଶନ ଓ ବିତରଣ • ନିୟମିତ ଚିକିତ୍ସାସେବା • ସାପ୍ତାହିକ ଶିଶୁବିଜ୍ଞାନ ଚକ୍ର • ସ୍କୁଲ ବିଜ୍ଞାନ କାର୍ଯ୍ୟକ୍ରମ • ଦଳଗତ ଗୀତ ଖେଳ, ଚିତ୍ର, ପରଖ ଓ ପରିପ୍ରକାଶ ଗତିବିଧି • ଆକାଶ ଦର୍ଶନ (ଖାଲି ଆଖି ଓ ଦୂରବୀକ୍ଷକ ଦ୍ୱାରା) • ଶିକ୍ଷକ ତାଲିମ କର୍ମଶାଳା • ଶିଶୁ ବିଜ୍ଞାନ ଶିବିର • ବିଜ୍ଞାନ ଖେଳଣା ତିଆରି ଓ ପ୍ରସାରଣ • ବାର୍ଷିକ କାଲେଣ୍ଡର ପ୍ରକାଶନ • ପୁସ୍ତକ ଉତ୍ସବ • ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ।